# ପ୍ରଜ୍ଞାପୁରୁଷ : ଭଗବାନ ପଣ୍ଡା



ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ

# ପ୍ରଜ୍ଞାପୁରୁଷ ଭଗବାନ ପଣ୍ଡା

ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ




କେଦାରନାଥ ଗବେଷଣା ପ୍ରତିଷ୍ଠାନ
କେଦାରଗୌରୀ ମାର୍ଗ, ଭୁବନେଶ୍ୱର-୭୫୧୦୦୨

ପ୍ରଜ୍ଞାପୁରୁଷ ଭଗବାନ ପଣ୍ଡା

| | |
|---|---|
| ଲେଖକ | ଡକ୍ଟର ଲାବଣ୍ୟଚନ୍ଦ୍ର ସାହୁ |
| ପ୍ରକାଶକ | କେଦାରନାଥ ଗବେଷଣା ପ୍ରତିଷ୍ଠାନ<br>କେଦାରଗୌରୀ ମାର୍ଗ, ଭୁବନେଶ୍ୱର-୦୨ |
| ଅକ୍ଷର ସଜ୍ଜା | କିରଣ କମ୍ପ୍ୟୁଟର୍ସ<br>ଓଲ୍ଡ ଟାଉନ୍, ଭୁବନେଶ୍ୱର-୭୫୧୦୦୨ |
| ମୁଦ୍ରଣ | କିରଣ ପ୍ରିଣ୍ଟଷ୍ଟେପ୍ସ<br>ଓଲ୍ଡ ଟାଉନ୍, ଭୁବନେଶ୍ୱର-୭୫୧୦୦୨ |
| ପ୍ରଚ୍ଛଦ | ତ୍ରିପତୀ ସାହୁ (ବାପି) |
| ସଂସ୍କରଣ | ପ୍ରଥମ - ୨୦୧୮ |
| ମୂଲ୍ୟ | ଦଶ ଟଙ୍କା |

**PRAGYANPURUSHA BHAGABAN PANDA**

| | |
|---|---|
| Written by | **Dr. Labanya Sahoo** |
| Published by | **Kedarnath Gaveshana Pratisthan** |
| Layout | **Kiran Computers**<br>Old Town, Bhubaneswar-751002 |
| Printed at | **Kiran Printsteps**<br>Old Town, Bhubaneswar-751002 |
| Cover D'sign | **Tripati Sahu (Bapi)** |
| Edition | 1st - 2018 |
| Price | Rupees Ten only |

# ପ୍ରଜ୍ଞାପୁରୁଷ ଭଗବାନ ପଣ୍ଡା

ଡକ୍ଟର ଭଗବାନ ପଣ୍ଡାଙ୍କ ପରି ଜଣେ ପ୍ରଚଣ୍ଡ ପ୍ରତିଭାଧର, ନିରନ୍ତର କର୍ମମୁଖର ସାରସ୍ୱତ ପୁରୁଷ ତଥା ଧୂରୀଣ ଗବେଷକଙ୍କ ଜୀବନଧାରା, ବ୍ୟକ୍ତିତ୍ୱ ତଥା ସାରସ୍ୱତ ସର୍ଜନା ସମ୍ବନ୍ଧିତ ଆଲୋଚନା-ଗ୍ରନ୍ଥ ରଚନା କରିବା, ଯେ କୌଣସି ଲେଖକଙ୍କ ପକ୍ଷରେ ଏକ ପରମ ସୌଭାଗ୍ୟ । ଏହି ବିଶାଳ ବ୍ୟକ୍ତିତ୍ୱର ଜୀବନୀକୁ ପୁଣି ସ୍ୱଳ୍ପ କେତୋଟି ପୃଷ୍ଠାରେ ଆବଦ୍ଧ କରିବା ଆହୁରି ଦୂରୁହ ବ୍ୟାପାର ମନେହୁଏ ।

ଡକ୍ଟର ପଣ୍ଡା ଥିଲେ – ସଂସ୍କୃତ, ସଂସ୍କୃତି, ସାହିତ୍ୟ, ଧର୍ମତତ୍ତ୍ୱ ସର୍ବୋପରି ପ୍ରାଚୀନ ଉତ୍କଳର ଗୌରବାବହ ପରଂପରାର ପ୍ରବୀଣ ବ୍ୟାଖ୍ୟାକାର । ଓଡ଼ିଶାର ପୁରପଲ୍ଲୀର ବିଭିନ୍ନ ଅଞ୍ଚଳରୁ ସଂଗୃହୀତ ପ୍ରାଚୀନ କୀଟଦଂଷ୍ଟ-ଜୀର୍ଣ୍ଣ-ତାଳପତ୍ରରେ ଲିପିବଦ୍ଧ ଉଭୟ ସଂସ୍କୃତ ଓ ଓଡ଼ିଆ ଭାଷାରେ କାବ୍ୟ, ନାଟକ, ସଙ୍ଗୀତ, ବ୍ୟାକରଣ, ଧର୍ମଗ୍ରନ୍ଥ ଆଧାରିତ ଉଚ୍ଚମାନର ଗ୍ରନ୍ଥଗୁଡ଼ିକୁ ତନ୍ନତନ୍ନ ନିରୀକ୍ଷଣ କରି ତାହାର ମୁଖବନ୍ଧ, ଟୀକା, ସାରଣୀ ସହିତ ସଂପାଦନା କରିବାରେ ଅଗ୍ରଣୀ ଭୂମିକା ଗ୍ରହଣ କରିଥିଲେ ଏବଂ ସେ କ୍ଷେତ୍ରରେ ବିପୁଳ ସଫଳତା ମଧ୍ୟ ହାସଲ କରିଥିଲେ । ଏ ସମସ୍ତ ବିଷୟବସ୍ତୁ ଗୁଡ଼ିକ ପୁସ୍ତକ ଆକାରରେ ଓ ପତ୍ରିକା ମାଧ୍ୟମରେ ପ୍ରକାଶିତ ହେବାପରେ ପ୍ରାଚୀନ ବିଦ୍ୟାନୁରାଗୀ ପାଠକଙ୍କ ମଧ୍ୟରେ ଚହଳ ସୃଷ୍ଟି କରିଥିଲା । ଉତ୍କଳର ଲୁପ୍ତ ଗୌରବାବହ ଐତିହ୍ୟ ଏବଂ ଐଶ୍ୱର୍ଯ୍ୟ ସମ୍ବନ୍ଧରେ ଅବଗତ ହେବା ଫଳରେ ଡକ୍ଟର ପଣ୍ଡା ସ୍ୱଳ୍ପକାଳ ମଧ୍ୟରେ ଜଣେ ସଂସ୍କୃତ ବିଦ୍ୱାନ୍ ଓ ଦକ୍ଷ ଗବେଷକ ଭାବରେ, ସୁଧୀବର୍ଗ ମହଲରେ ବିପୁଳ ପ୍ରଶଂସା ଭାଜନ ହୋଇଥିଲେ ।

ସେ ରାଜ୍ୟ ସଂସ୍କୃତି ନିର୍ଦ୍ଦେଶାଳୟରେ ୧୯୭୦ ମସିହାରେ ସମ୍ପାଦକ ଭାବରେ ନିଯୁକ୍ତି ପାଇଥିଲେ । ପରେ ୧୯୯୦ ମସିହା ବେଳକୁ ଉକ୍ତ ବିଭାଗରେ ସେ ଉପନିର୍ଦ୍ଦେଶକ ପଦକୁ ଉନ୍ନୀତ ହେଲେ । ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ (ନିର୍ଦ୍ଦେଶାଳୟ) ତାଙ୍କୁ ପ୍ରାଚୀନ ତାଳପତ୍ର ପୋଥିରେ ଲିପିବଦ୍ଧ ବିଭିନ୍ନ ବିଷୟକ

ଓ ସଂସ୍କୃତ- ଓଡ଼ିଆରେ ଲିଖିତ ପ୍ରାଚୀନ ଗ୍ରନ୍ଥଗୁଡ଼ିକୁ ପାଠକରି ତାହାର ଟୀକା, ଟିପ୍ପଣୀ ଲେଖିବାର ଦାୟିତ୍ୱ ଦେଇଥିଲେ। ସେ ସେହି କାର୍ଯ୍ୟରେ ନିଜର ନିଷ୍ଠା ଓ କର୍ମକୁଶଳତା ପ୍ରଦର୍ଶନ କରି ଯାଇଛନ୍ତି। ଟିପ୍ପଣୀ ଲେଖିବା ଠାରୁ ପ୍ରୁଫ୍ ସଂଶୋଧନ ତଥା ପୁସ୍ତକ ଆକାରରେ ପ୍ରକାଶନ ପର୍ଯ୍ୟନ୍ତ ସମସ୍ତ କାର୍ଯ୍ୟ ତ୍ରୁଟିଶୂନ୍ୟ ଭାବରେ ତଥା ନିଜର ପ୍ରତ୍ୟକ୍ଷ ତତ୍ତ୍ୱାବଧାନରେ ଦାୟିତ୍ୱ ନିଷ୍ପାଦନ କରିଛନ୍ତି। ସେ ଅଭିଜାତ ପତ୍ରିକା ଗୁଡ଼ିକ ପାଇଁ ନିୟମିତ ଭାବରେ ଗବେଷଣାତ୍ମକ ପ୍ରବନ୍ଧ ଲେଖୁଥିଲେ, ଯାହା ପ୍ରକାଶିତ ହେବା ଫଳରେ ପାଠକ ମହଲରେ ବିଶେଷ ଆଦୃତି ଲାଭ କରିଥିଲା। ସେହି ପତ୍ରିକା ଗୁଡ଼ିକ ମଧ୍ୟରେ ଥିଲା- O.H.J.S, କୋଣାର୍କ, ଝଙ୍କାର, ସହକାର, ପୌରୁଷ ଇତ୍ୟାଦି । ତାଙ୍କ ଦ୍ୱାରା ଲିଖିତ ଓ ବିଭିନ୍ନ ପତ୍ର ପତ୍ରିକାରେ ପ୍ରକାଶିତ ପ୍ରବନ୍ଧ-ଆଲୋଚନାର ଏକ ତାଲିକା, ଏହି ପୁସ୍ତକର ପରବର୍ତ୍ତୀ ଅଧ୍ୟାୟରେ ସଂଯୋଜିତ ହୋଇଅଛି।

ଡକ୍ଟର ପଣ୍ଡା ଥିଲେ ଗବେଷକଙ୍କ ପାଇଁ ଗୁରୁଣାଂ ଗୁରୁ, ଉତ୍ସାହ ଓ ପ୍ରେରଣାର ଦାତା। ଅତ୍ୟନ୍ତ ସ୍ନେହୀ ଓ ମେଳାପୀ ସ୍ୱଭାବର ଏହି ବିଦ୍ୟାଗୁରୁ ଓ ମାର୍ଗଦର୍ଶକଙ୍କ ଅଧୀନରେ ସଂସ୍କୃତ ଓ ଓଡ଼ିଆରେ ଗବେଷଣା କରି ୬ଜଣ ଗବେଷକ ଛାତ୍ର-ଛାତ୍ରୀ ତାଙ୍କ ଜୀବଦଶାରେ ବିଶ୍ୱବିଦ୍ୟାଳୟରୁ ପି.ଏଚ୍.ଡ଼ି. ଡିଗ୍ରୀ ଲାଭ କରିସାରିଛନ୍ତି। ପଣ୍ଡିତ ପଣ୍ଡା ଓଡ଼ିଶା ସରକାରଙ୍କ ତରଫରୁ ବିଭିନ୍ନ ଜାତୀୟ-ଆନ୍ତର୍ଜାତୀୟ ସଂପାନରେ ଯୋଗଦେଇ, ଓଡ଼ିଶାର ପ୍ରାଚୀନଐତିହ୍ୟ ସମ୍ବନ୍ଧିତ ଉଚ୍ଚକୋଟୀର ପ୍ରବନ୍ଧମାନ ଉପସ୍ଥାପନ କରିଥିଲେ। ବିତର୍କରେ ଭାଗ ନେଇଥିଲେ। ଏହି ଅବସରରେ ସେ ଉତ୍କଳର ପ୍ରାଚୀନ ଗୌରବାବହ ଐତିହ୍ୟ ଓ ପାରମ୍ପାରିକ ସଂସ୍କୃତି ପ୍ରତି ବିଦେଶୀ ବିଦ୍ୱାନଙ୍କ ଦୃଷ୍ଟି ଆକର୍ଷଣ କରିପାରିଥିଲେ।

ସେ ସରକାରୀ ଦାୟିତ୍ୱରୁ ଅବସର ନିଅନ୍ତି ୧୯୯୬ ମସିହାରେ। ଅବସର ପରେ ମଧ୍ୟ ଅନ୍ତତଃ ୨୦୦୫ ମସିହା ଯାଏ ଦୀର୍ଘ ୩୫ ବର୍ଷ କାଳ ସକ୍ରିୟ ରହି, ନିଜର ମନ-ବୁଦ୍ଧି-ଚିତ୍ତ-ହୃଦୟକୁ ଏକୀଭୂତ କରି, ଯେଉଁ ବିପୁଳ ପରିମାଣର ସାରସ୍ୱତ ସୃଷ୍ଟି ଆମ ପାଖରେ ରଖି ଯାଇଛନ୍ତି, ତାହା ବାସ୍ତବିକ୍ ଅକଳ୍ପନୀୟ, ଅତୁଳନୀୟ ଓ ବିସ୍ମୟକର।

ବୟସର ଅତିକ୍ରାନ୍ତ ଜୀବନରେ ପାରିବାରିକ ଜଟିଳ ସମସ୍ୟା ତାଙ୍କୁ ବ୍ୟଥିତ ଓ ମ୍ରିୟମାଣ କରି ଦେଇଥିଲା। ଅବସର ପରେ କେଦାରନାଥ ଗବେଷଣା

ପ୍ରତିଷ୍ଠାନର ସମ୍ପାଦକ ଦାୟିତ୍ୱରେ ଥିଲେ । କ୍ରମଶଃ ତାଙ୍କର ସ୍ମୃତିଶକ୍ତି ହ୍ରାସ ହେବାକୁ ଲାଗିଲା। ନାନା ରୋଗର ଲକ୍ଷଣମାନ ତାଙ୍କଠାରେ ଦେଖାଦେଲା। ନିରନ୍ତର ଲେଖନୀହସ୍ତ ଏହି ବିରଳ ସୁଦକ୍ଷ ଗବେଷକ ଓ ସଂସ୍କୃତ ବିଶାରଦ ଜଣକ, ନିଜର ସ୍ୱାସ୍ଥ୍ୟଗତ ଅସମର୍ଥତା ଭିତରେ ସଂକୁଚିତ ହୋଇ ରହିଗଲେ ଶେଷ ନିଶ୍ୱାସ ଛାଡ଼ିବା ଯାଏ । ତାଙ୍କ 'ଜନ୍ମ-ଜୀବନୀ-ଜୀବିକା' ସମ୍ବନ୍ଧରେ କିଞ୍ଚିତ୍ ଦୃକ୍‌ପାତ କରାଯାଇଛି ।

## ଜନ୍ମ ଓ ପିଲାଦିନ :

ଅବିଭକ୍ତ ବାଲେଶ୍ୱର ଜିଲ୍ଲାର ସୋର ନିକଟସ୍ଥ କିଆରପୁର (କେଦାରପୁର) ଗ୍ରାମରେ ଏହି ସାରସ୍ୱତ ପୁରୁଷଙ୍କର ଜନ୍ମ ୧୯୩୮ ମସିହା ଜାନୁଆରୀ ୧୦ ତାରିଖରେ । ତାଙ୍କ ପିତାଙ୍କ ନାମ ବୃନ୍ଦାବନ ଚନ୍ଦ୍ର ପଣ୍ଡା ଏବଂ ମାତାଙ୍କ ନାମ ଶ୍ରୀମତୀ ପଣ୍ଡା । ବାଲେଶ୍ୱର ଜିଲ୍ଲା ବିଷ୍ଣୁପୁର ଗ୍ରାମର ଭାର୍ଗବୀ ଦେବୀଙ୍କ ସହ ତାଙ୍କର ବିବାହ ହୋଇଥିଲା । ତାଙ୍କ ଶ୍ୱଶୁରଙ୍କ ନାମ ଭାବଗ୍ରାହୀ ଆଚାର୍ଯ୍ୟ ଓ ଶାଶୁଙ୍କ ନାମ ଥିଲା ସତ୍ୟଭାମା ଦେବୀ। ସ୍ୱର୍ଗତ ପଣ୍ଡାଙ୍କର ପାଞ୍ଚ ପୁତ୍ର ଏବଂ ଏକମାତ୍ର କନ୍ୟା ଅଛନ୍ତି । ପୁତ୍ରମାନଙ୍କର ନାମ ହେଲା- ସର୍ବଶ୍ରୀ ବିଜୟକୁମାର ପଣ୍ଡା, ସଞ୍ଜୟକୁମାର ପଣ୍ଡା, ବିନୟକୁମାର ପଣ୍ଡା, ଅମୀୟକୁମାର ପଣ୍ଡା, ଅକ୍ଷୟକୁମାର ପଣ୍ଡା ଏବଂ ଏକମାତ୍ର କନ୍ୟାଙ୍କର ନାମ ହେଲା ମୈତ୍ରେୟୀ ପଣ୍ଡା ।

ତାଙ୍କ ସଂପର୍କରେ କହିବାକୁ ଯାଇ ଦ୍ୱିତୀୟପୁତ୍ର ସୁପୁତ୍ର ସଞ୍ଜୟ କୁମାର ପଣ୍ଡା କହନ୍ତି – "ବାପାଙ୍କ ପିଲାଦିନର କଥା ଓ କେତେକ ଘଟଣା କୌତୂହଳପ୍ରଦ ଅଟେ । ବାପାଙ୍କୁ ପିଲାଦିନେ ଗ୍ରାମରେ ସମସ୍ତେ ଚେମା ବୋଲି ଡ଼ାକନ୍ତି । ମୋର ଜେଜେବାପା ବୃନ୍ଦାବନ ପଣ୍ଡା ଓ ଜେଜେ ମାଙ୍କଠାରୁ ପ୍ରଥମେ ଏକ ଝିଅ ଜନ୍ମ ହୋଇଥିଲା। ଏହାପରେ ୨୦ ବର୍ଷ ପର୍ଯ୍ୟନ୍ତ ତାଙ୍କର ଅନ୍ୟ ସନ୍ତାନ ଜନ୍ମ ନ ହେବାରୁ ଦୁହେଁ ବହୁକଷ୍ଟରେ ଏକାମ୍ରକ୍ଷେତ୍ର (ଭୁବନେଶ୍ୱର) କୁ ଆସି, କେଦାରଗୌରୀ ଓ ମୁକ୍ତେଶ୍ୱର ମନ୍ଦିର ସଂଲଗ୍ନ ମରିଚିକୁଣ୍ଡ ପାଣିରେ ସ୍ନାନ କରିବା ପରେ ଗୌରୀଙ୍କ କୃପାରୁ ବାପାଙ୍କର ଜନ୍ମ ବୋଲି ଶୁଣିବାକୁ ପାଇଲି । ମାତା ଗୌରୀଙ୍କ କୃପାରୁ ଜନ୍ମ ବୋଲି, ଗ୍ରାମର ଋଷୀମୂଳିଆଠାରୁ ସବର୍ଣ୍ଣ-ଅସବର୍ଣ୍ଣ ସରଳ ଗାଉଁଲି ଲୋକେ ତାଙ୍କୁ ଶ୍ରଦ୍ଧା ଓ ଭକ୍ତି କରୁଥିଲେ। ବାପା କେବେ କେବେ, ସମୟ ମିଳିଲେ ଆମ ଗାଁକୁ ଯାଆନ୍ତି । ଗ୍ରାମବାସୀ ତାଙ୍କୁ ଦେଖିବାକୁ ଓ ଖବର ବୁଝିବାକୁ ରୁଣ୍ଡ ହୋଇଯାଆନ୍ତି ।

ଆମ ଖଞ୍ଜାରେ ଏକ ପ୍ରକାର ଉତ୍ସବ ଲାଗିଯାଏ। ହେଇ, ଚେମା ଆସିଗଲା ! ବୋଲି କୋଟିନିଧି ମଣନ୍ତି ସମସ୍ତେ। ୧୯୪୫ ମସିହା କଥା। ଗ୍ରାମ ନିକଟରେ ଥିବା ସଂସ୍କୃତ ଟୋଲ୍‌ରେ ପଢ଼ା ଶେଷ ପରେ ବାଲେଶ୍ୱର ଜିଲ୍ଲାରେ ସର୍ବୋଚ୍ଚ ନମ୍ବର ରଖି ସେ ପାଶ୍ କଲେ। ଏବେ ଆମ ଗ୍ରାମରୁ ବହୁ ଶିକ୍ଷିତ ଇଞ୍ଜିନିୟର ଓ ଡ଼ାକ୍ତର ବାହାରିଲେଣି। ମାତ୍ର ବାପାଙ୍କର ପରି ବିଦ୍ୱାନ ବ୍ୟକ୍ତି ଓ ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ପ୍ରତିଭା ନାହାନ୍ତି।"

ଡକ୍ଟର ଭଗବାନ ପଣ୍ଡା ୧୯୯୬ ମସିହାରୁ ପବିତ୍ର ଏକାମ୍ରକ୍ଷେତ୍ରର ସ୍ଥାୟୀ ବାସିନ୍ଦା ହୋଇ, ଶେଷ ନିଶ୍ୱାସ ପର୍ଯ୍ୟନ୍ତ ସେହି ପବିତ୍ର ଗୃହରେ ଅବସ୍ଥାନ କରୁଥିଲେ। ବିନ୍ଦୁସାଗର ସନ୍ନିକଟ-କୋଟିତୀର୍ଥ ମାର୍ଗରେ ଅବସ୍ଥିତ ଏହି ଗୃହସ୍ଥାଶ୍ରମର ନାମଟି ମଧ୍ୟ ଉଲ୍ଲେଖନୀୟ। ତାହାହେଲା - ଶିବାଶ୍ରମ, (ପ୍ଲଟ ନମ୍ବର-୩୧୮୧/୮୨) କୋଟିତୀର୍ଥ ମାର୍ଗ, ଭୁବନେଶ୍ୱର-୨॥

## ଶିକ୍ଷା :

ଡକ୍ଟର ପଣ୍ଡାଙ୍କର ଶିକ୍ଷାଗତ ଯୋଗ୍ୟତା ଥିଲା ଅତ୍ୟନ୍ତ ଉଚ୍ଚକୋଟୀର। ସେ ୧୯୫୬ରେ ଓଡ଼ିଶା ସଂସ୍କୃତ ସମିତି (ପୁରୀ)ରୁ ସାହିତ୍ୟାଚାର୍ଯ୍ୟ, ୧୯୬୧ରେ ରାଷ୍ଟ୍ରଭାଷା ପ୍ରଚାର ସମିତି ରୁ ରତ୍ନ (ହିନ୍ଦୀ), ୧୯୬୭ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସଂସ୍କୃତରେ ସ୍ନାତକୋତ୍ତର, ୧୯୬୮ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ଓଡ଼ିଆରେ ସ୍ନାତକୋତ୍ତର ଏବଂ ୧୯୮୧ରେ ଉତ୍କଳ ବିଶ୍ୱବିଦ୍ୟାଳୟରୁ ସଂସ୍କୃତରେ ପିଏଚ୍.ଡ଼ି ଲାଭ କରିଥିଲେ।

ଅଠର ବର୍ଷ ବୟସରେ ସଂସ୍କୃତରେ ସାହିତ୍ୟାଚାର୍ଯ୍ୟ (୧୯୫୬) ଏବଂ ଲାଗ୍ ଲାଗ୍ ଦୁଇବର୍ଷ ୧୯୬୭-୧୯୬୮ରେ ସଂସ୍କୃତ ଓ ଓଡ଼ିଆଭାଷା ସାହିତ୍ୟରେ, ଉପାଧ୍ୟୁତ୍ତର ଡିଗ୍ରୀ ହାସଲ କରିବା ତାଙ୍କର ଏକ ବିଶିଷ୍ଟ କୃତିତ୍ୱ ।

## ବୃତ୍ତିଗତ ଜୀବନ :

ସ୍ୱର୍ଗତଃ ପଣ୍ଡା, ତାଙ୍କର ବୃତ୍ତିଗତ ଜୀବନ ସଂସ୍କୃତ ଓ ହିନ୍ଦୀରେ ଶିକ୍ଷକତାରୁ ଆରମ୍ଭ କରିଥିଲେ। ସେ ରଘୁନାଥ ନାରାୟଣ ହାଇସ୍କୁଲରେ ସଂସ୍କୃତ ଶିକ୍ଷକ ଭାବେ ୧୯୫୬-୧୯୬୦ ପର୍ଯ୍ୟନ୍ତ ଅତି ନିଷ୍ଠାର ସହିତ ଶିକ୍ଷାଦାନ କରିଥିଲେ।

ଏ ସଂପର୍କରେ ସ୍ୱର୍ଗତ ପଣ୍ଡାଙ୍କ ସମସାମୟିକ ଶିକ୍ଷକବନ୍ଧୁ ପଣ୍ଡିତ ହରେକୃଷ୍ଣ ଧୂପାଳ ଶର୍ମା ଏକ ଶୋକବାର୍ତ୍ତାରେ ନିଜର ଅନୁଭୂତି ବର୍ଣ୍ଣନା କରି କହିଛନ୍ତି-

"ବିଗତ ୧୯୫୬ ମସିହାରୁ ସେ ମୋର ଅତ୍ୟନ୍ତ ଅନ୍ତରଙ୍ଗ ପରିଚିତ ବନ୍ଧୁ । ପାଠପଢ଼ା ସମୟ କଥା । ଉଭୟଙ୍କର ପରୀକ୍ଷା ସମୟରେ ବାଲେଶ୍ୱରରେ ଭେଟ ହୁଏ । ପଢ଼ା ଶେଷ ପରେ ସେ ପ୍ରଥମ କରି ମାର୍କୋଣାସ୍ଥିତ ରଘୁନାରାୟଣ ଉଚ୍ଚବିଦ୍ୟାଳୟରେ ଶିକ୍ଷକତା ଆରମ୍ଭ କଲେ । ପରବର୍ତ୍ତୀ ସମୟରେ ୧୯୬୪ରେ ମୁଁ ସେଠାରେ ଶିକ୍ଷକତା କଲି । ସେ ବିଭିନ୍ନ ବିଦ୍ୟାଳୟରେ ଶିକ୍ଷକତା କରି ସଂସ୍କୃତ ନିର୍ଦ୍ଦେଶାଳୟ ପୁରୀକୁ ଆସିଲେ । ସେଠାରୁ ଭୁବନେଶ୍ୱରସ୍ଥ ସଂସ୍କୃତି ବିଭାଗକୁ ଆସି ବିଭିନ୍ନ ପଦବୀରେ କାମ କରି ୧୯୯୬ରେ ଅବସର ନେଲେ । ମୁଁ ଏହି ସମୟରେ ଭୁବନେଶ୍ୱରସ୍ଥ ଇଉନିଟ-୧ ଉଚ୍ଚବିଦ୍ୟାଳୟରେ ଶିକ୍ଷକ ଥିବାରୁ, ଆମ ଦୁହିଁଙ୍କ ବନ୍ଧୁତା ନିବିଡ଼ ଥିଲା । ଏପରିକି ଆମ ଭିତରେ ପାରିବାରିକ ସଂପର୍କ ସୃଷ୍ଟି ହୋଇଥିଲା ।"

ସ୍ୱର୍ଗତଃ ପଣ୍ଡାଙ୍କ, ବିନ୍ଦୁମାଧବ ବାଗୁରାଇ ହାଇସ୍କୁଲରେ ଶିକ୍ଷକତା ସଂପର୍କରେ ସ୍ମୃତିଚାରଣ କରି, ତାଙ୍କର ପୁରାତନ ଛାତ୍ରୀ ଶ୍ରୀମତୀ ଭାବୀ ବେହେରା (ସମ୍ପ୍ରତି: ଶୈଳଶ୍ରୀ ବିହାର-ଭୁବନେଶ୍ୱର) କହନ୍ତି-

"ମୋର ପରମପୂଜ୍ୟ ଶିକ୍ଷକ ସ୍ୱର୍ଗତ ପଣ୍ଡାଙ୍କ ଠାରୁ ୧୯୬୨-୬୪ଯାଏ ମାଟ୍ରିକ ସିଲାବସ୍‌ର ହିନ୍ଦୀ ଓ ସଂସ୍କୃତ ପାଠ ପଢ଼ିଛି । ଏହି ବିଦ୍ୱାନ୍ ଶିକ୍ଷକଙ୍କ ଶିକ୍ଷାଦାନ ବଳରେ ମୁଁ ସଂସ୍କୃତ ଓ ହିନ୍ଦୀରେ ଭଲ ନମ୍ବର ରଖି ପାଶ୍ କଲି । ସେ ସର୍ବଦା ଦରିଦ୍ର ଛାତ୍ରଛାତ୍ରୀଙ୍କୁ ସାହାଯ୍ୟ କରୁଥିଲେ । ତାଙ୍କର ଦୁଇ ପୁଅ ହେବା ପରେ ମୋତେ ଧରମ ଝିଅ କରିଥିଲେ । ମୋ ସ୍ୱାମୀଙ୍କୁ ସେ ଜ୍ୱାଇଁର ମର୍ଯ୍ୟାଦା ଦେବା ସହିତ ନାନାମତେ ସାହାଯ୍ୟ କରିଛନ୍ତି । ତାଙ୍କ ପତ୍ନୀ-ଭାର୍ଗବୀ ଦେବୀ ଅତ୍ୟନ୍ତ ଧର୍ମପରାୟଣା ଓ ମମତାମୟୀ । ମୋ ବଡ଼ପୁଅ ସୁବ୍ରତକୁ ସେ ନିଜ ଭୁବନେଶ୍ୱର ଘରେ ରଖି ବେସିକ୍ ସାଇନସ୍ କଲେଜରେ ନିଜ ଖର୍ଚ୍ଚରେ ପଢ଼ାଉ ଥିଲେ ।"

ପରବର୍ତ୍ତୀ ସମୟରେ ସେ ଓଡ଼ିଶା ସଂସ୍କୃତ ସମିତି (ପୁରୀ) ୨୧.୧୨.୧୯୬୪ରୁ ସହ ସମ୍ପାଦକ ଓ ୦୯.୦୬.୧୯୭୦ ରୁ ସହ ଅଧ୍ୟକ୍ଷ ଭାବେ କାର୍ଯ୍ୟ କରିଥିଲେ । ତାଙ୍କ ଜୀବନର ସବୁଠାରୁ ଗୁରୁତ୍ୱପୂର୍ଣ୍ଣ ସମୟଟି ଥିଲା ଭୁବନେଶ୍ୱରସ୍ଥ ରାଜ୍ୟ ସଂସ୍କୃତି ନିର୍ଦ୍ଦେଶାଳୟରେ ନିଯୁକ୍ତି ପାଇବା । ସେ ସଂସ୍କୃତି ନିର୍ଦ୍ଦେଶାଳୟ ରେ ସମ୍ପାଦକ

ଭାବେ ୧୦.୦୬.୧୯୭୦ରୁ ୨୩.୦୧.୧୯୯୦ ଏବଂ ଏହି ବିଭାଗରେ ପଦୋନ୍ନତ ନେଇ ଉପନିର୍ଦ୍ଦେଶକ ଭାବେ ୨୪.୦୧.୧୯୯୦ରୁ ୩୧.୦୧.୧୯୯୬ ଯାଏଁ କାର୍ଯ୍ୟ କରିଥିଲେ ।

## କେଦାରନାଥ ଗବେଷଣା ପ୍ରତିଷ୍ଠାନ ଓ ଡକ୍ଟର ଭଗବାନ ପଣ୍ଡା

୧୯୯୬ ମସିହା ଅଗଷ୍ଟ ୩୦ ତାରିଖରେ ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗରୁ ଅବସର ଗ୍ରହଣ କଲେ। ସ୍ୱର୍ଗତପଣ୍ଡା, ଐତିହାସିକ କେଦାରନାଥ ମହାପାତ୍ରଙ୍କ ସ୍ମୃତିରେ ପ୍ରତିଷ୍ଠିତ କେଦାରନାଥ ଗବେଷଣା ପ୍ରତିଷ୍ଠାନର ପ୍ରତିଷ୍ଠାତା ସଦସ୍ୟ ଥିଲେ। ୧୯୯୬ ମସିହାରେ ପଣ୍ଡିତ ନୀଳମଣି ମିଶ୍ରଙ୍କର ଦେହାନ୍ତ ହେବାରୁ ସ୍ୱର୍ଗତ ପଣ୍ଡା ୧୯୯୭ ମସିହାଠାରୁ ୨୦୦୬ ଯାଏ ଏହାର ସଂପାଦକ ଦାୟିତ୍ୱ ନିଷ୍ଠାର ସହିତ ତୁଲାଇ ଆସିଥିଲେ। ଏହି ଗବେଷଣା ପ୍ରତିଷ୍ଠାନର ଅନ୍ୟ ପ୍ରତିଷ୍ଠାତା ସଦସ୍ୟଗଣ ହେଲେ- ସ୍ୱର୍ଗତ ଗୁଣନିଧି ମହାପାତ୍ର, ସ୍ୱର୍ଗତ କରୁଣାସାଗର ବେହେରା, ସ୍ୱର୍ଗତ ଗଣେଶ ପ୍ରସାଦ ପରିଜା, ସ୍ୱର୍ଗତ ରବିନାରାୟଣ ଦାଶ, ସ୍ୱର୍ଗତ ଲକ୍ଷ୍ମଣକୁମାର ପଣ୍ଡା, ସ୍ୱର୍ଗତ ନୀଳମଣି ମିଶ୍ର, ସ୍ୱର୍ଗତ ଦିନନାଥ ପାଠୀ, ଡ. କରୁଣାକର ବିଶୋଇ, ଡ.ମହେଶପ୍ରସାଦ ଦାଶ, ଶ୍ରୀ ରଘୁନାଥ ମିଶ୍ର, ଆଇ ଏ ଏସ୍ (ଅବସରପ୍ରାପ୍ତ) ଓ ଶ୍ରୀ ପ୍ରସନ୍ନ କୁମାର ମହାପାତ୍ର।

ଅବୈତନିକ ଭାବରେ ଶ୍ରଦ୍ଧାନିଷ୍ଠାର ସହିତ ଘଣ୍ଟା ଘଣ୍ଟା ଧରି ପ୍ରତିଷ୍ଠାନର କାଠ ଚୌକିରେ ବସି, ଟିକିନିକି ଭାବରେ ଦାୟିତ୍ୱ ସମ୍ପାଦନ କରୁଥିବା ସ୍ୱର୍ଗତ ପଣ୍ଡାଙ୍କର କାର୍ଯ୍ୟଶୈଳୀ ଥିଲା ଅନନ୍ୟ । ଜ୍ଞାନରେ ଗଭୀରତା, ବିଚାରରେ ନ୍ୟାୟପରାୟଣତା, ଆଚରଣରେ ସାତ୍ତ୍ୱିକତା, ସହନଶୀଳତା, ନମ୍ରତା ତଥା ମୃଦୁଭାଷୀ ସ୍ୱର୍ଗତ ପଣ୍ଡା- ଅତି ସାଧାରଣରୁ ଅସାଧାରଣର ଉଚ୍ଚ ପାହାଡ଼ରେ ପହଞ୍ଚି ଯାଇଥିଲେ। ସଂସ୍କୃତ ନିର୍ଦ୍ଦେଶାଳୟରେ ତାଙ୍କର କାର୍ଯ୍ୟକାଳ ସମୟରେ ଅନେକ ପୁସ୍ତକ ସଂପାଦନା କରି ଓଡ଼ିଆ ବାଣୀ ଭଣ୍ଡାରକୁ ସମୃଦ୍ଧ କରିଯାଇଛନ୍ତି ।

## ପ୍ରକାଶିତ ଓ ସମ୍ପାଦିତ-ଅନୂଦିତ ପୁସ୍ତକ-ପତ୍ରିକାର ତାଲିକା :

ଡକ୍ଟର ପଣ୍ଡାଙ୍କର ବିପୁଳ ସାରସ୍ୱତ ସର୍ଜନାକୁ ଏହି କ୍ଷୁଦ୍ର ପୁସ୍ତକରେ ବିଶ୍ଳେଷଣ କରି ସ୍ଥାନିତ କରିବା ସମ୍ଭବ ନୁହେଁ। ଏଣୁ ଉପଲବ୍ଧ- ପୁସ୍ତକ, ପ୍ରବନ୍ଧ, ଆଲୋଚନାର ତାଲିକାକୁ ପାଠକଙ୍କ ଅବଗତି ନିମିତ୍ତ ଉଦ୍ଧାର କରାଗଲା। ଡକ୍ଟର

ପଣ୍ଡା- ସଂସ୍କୃତି ନିର୍ଦ୍ଦେଶାଳୟରେ ସମ୍ପାଦକ ତଥା ଉପନିର୍ଦ୍ଦେଶକ ଦାୟିତ୍ୱରେ ଥିବା ବେଳେ ନିଜର ଗଭୀର ନିରୀକ୍ଷଣ ଓ ତତ୍ତ୍ୱାବଧାନରେ ଅନେକ ଓଡ଼ିଆ ଓ ସଂସ୍କୃତ ପୁସ୍ତକର ସମ୍ପାଦନା କରିଥିଲେ, ଯାହାର ଏକ ତାଲିକା ନିମ୍ନରେ ପ୍ରଦାନ କରାଗଲା -

**(କ) ଓଡ଼ିଆରେ ସମ୍ପାଦିତ ପୁସ୍ତକର ତାଲିକା :**

୧. କୃଷ୍ଣ ରସାମୃତ- କରୁଣାକର ପଟ୍ଟନାୟକ- ୧୯୭୧
(ରାଧାକୃଷ୍ଣ ପ୍ରେମ ସମ୍ବନ୍ଧୀୟ ୪୪ ଛାନ୍ଦରେ ରଚିତ କାବ୍ୟ)

୨. କବି କଳ୍ପଦ୍ରୁମ-ଯଦୁମଣି ରାଉତରାୟ- ୧୯୭୨
(ଓଡ଼ିଆ ଅଳଙ୍କାର ଓ ସଂଗୀତ ସମ୍ବନ୍ଧୀୟ ୮ ପ୍ରକରଣରେ ରଚିତ ଗ୍ରନ୍ଥ)

୩. ପ୍ରହ୍ଲାଦ ନାଟକ-ରାମକୃଷ୍ଣ ଛୋଟରାୟ- ୧୯୭୩
(ପ୍ରାଚୀନଓଡ଼ିଆ ଲୋକନାଟକ)

୪. ଚିତ୍ରକଳା- ଲୋକନାଥ ବିଦ୍ୟାଧର- ୧୯୭୩
(୧୫ ଛାନ୍ଦରେ ରଚିତ କାଳ୍ପନିକ କାବ୍ୟ)

୫. ବ୍ରଜରାଜ ଗ୍ରନ୍ଥାବଳୀ- ବ୍ରଜରାଜ ସିଂହଦେଓ - ୧୯୭୫
(ବ୍ରଜରାଜ ସିଂହଦେଓଙ୍କ ରଚନା ସମସ୍ତ)

୬. ବିଚିତ୍ର ଭାରତ, ପ୍ରଥମ ଭାଗ-ବିଶ୍ୱମ୍ଭର ଦାସ- ୧୯୯୨
(୫୪ ଛାନ୍ଦ ବିଶିଷ୍ଟ ମହାଭାରତ ଆଦିପର୍ବ)

୭. ବିଚିତ୍ର ଭାରତ, ଦ୍ୱିତୀୟ ଭାଗ - ବିଶ୍ୱମ୍ଭର ଦାସ - ୧୯୯୨
(ମଧ୍ୟପର୍ବ-୧୬ ଛାନ୍ଦ ଓ ସଭାପର୍ବ-୩୨ ଛାନ୍ଦ

୮ ବିଚିତ୍ର ଭାରତ, ତୃତୀୟ ଭାଗ - ବିଶ୍ୱମ୍ଭର ଦାସ- ୧୯୮୩
(ଆରଣ୍ୟପର୍ବ- ୨୬ଛନ୍ଦ-ବିରାଟପର୍ବ-୨୦ଛାନ୍ଦ)

୯. ବିଚିତ୍ର ଭାରତ, ଚତୁର୍ଥ ଭାଗ, - ବିଶ୍ୱମ୍ଭର ଦାସ- ୧୯୮୩
(ଉଦ୍‌ଯୋଗ-୧୪ଛାନ୍ଦ, ଭୀଷ୍ମପର୍ବ-୨୨ଛାନ୍ଦ, ଦ୍ରୋଣପର୍ବ- ୮ଛାନ୍ଦ)

୧୦. ବିଚିତ୍ର ଭାରତ, ପଞ୍ଚମ ଭାଗ- ବିଶ୍ୱମ୍ଭର ଦାସ - ୧୯୯୦
( କର୍ଣ୍ଣ -ଶଲ୍ୟ-କୃପ-ଗଦା-କଇଁଶିକ, ଶ୍ଳୋକ, ଶାନ୍ତି -
ସ୍ତ୍ରୀ -ଯଜ୍ଞ-ହରିବଂଶ-ସ୍ୱର୍ଗାରୋହଣ ପର୍ବ- ୧୯ଛାନ୍ଦ)

୧୧. ରାମଚନ୍ଦ୍ର ବିହାର, ପ୍ରଥମ ଭାଗ-ମାଗୁଣି ପଟ୍ଟନାୟକ- ୧୯୮୪
(ଆଦି - ୪୨, ଅଯୋଧ୍ୟା -୨୬, ଆରଣ୍ୟ-୨୮, କିଷ୍କିନ୍ଧା-୩୮ ଛାନ୍ଦ)

୧୨. ରାମଚନ୍ଦ୍ର ବିହାର ଦ୍ୱିତୀୟ ଭାଗ-ମାଗୁଣି ପଟ୍ଟନାୟକ - ୧୯୯୧

(ସୁନ୍ଦର -୬୯, ଲଙ୍କା -୧୧୩. ଉତ୍ତର - ୪୭, ପରିଶିଷ୍ଟ -୧୬
ଗୋପୀ ଭାଷା ସହିତ)

୧୩. ରଘୁନାଥ ବିଳାସ - ନଟବର ସିଂହ ମର୍ଦ୍ଦରାଜ - ୨୦୦୦

୧୪. ଗୁଣସଂହିତା - ଡ଼ି.ନନ୍ଦ (୩୨ ଛାନ୍ଦ - ବିଶିଷ୍ଟ ଦାର୍ଶନିକଗ୍ରନ୍ଥ)୧୯୯୪

୧୫. ରସ କଳ୍ପଲତା - ବ୍ରଜସୁନ୍ଦର ପଟ୍ଟନାୟକ -୧୯୯୯
(୪୬ ଛାନ୍ଦ, ଉପାଦେୟ କାଳ୍ପନିକ କାବ୍ୟ)

୧୬. ସ୍ୱାଧିନତା ପୂର୍ବର କଂଗ୍ରେସ - ସୁରେନ୍ଦ୍ର ନାଥ ଦ୍ୱିବେଦୀ - ୧୯୯୨
(ଭାରତୀୟ ଜାତୀୟ କଂଗ୍ରେସ ଇତିହାସ)

**(ଖ) ସମ୍ପାଦିତ ସଂସ୍କୃତ ପୁସ୍ତକର ତାଲିକା :**

(୧) ସୂରି ସର୍ବସ୍ୱ, ପ୍ରଥମ ଭାଗ - ଗୋବିନ୍ଦ କବିଭୂଷଣ ସାମନ୍ତରାୟ -୧୯୯୪
( ୧-୨୧ ଅଧ୍ୟାୟ ବିଶିଷ୍ଟ ଧର୍ମଶାସ୍ତ୍ର)

(୨) ସୂରି ସର୍ବସ୍ୱ - ୨ଭାଗ -୧୯୭୪
(୨୨-୪୦ ଅଧ୍ୟାୟ -ଧର୍ମଶାସ୍ତ୍ର)

(୩) ରୁକ୍ମିଣୀ ପରିଣୟ ମହାକାବ୍ୟ - ନାରାୟଣ ଭଞ୍ଜ - ୧୯୭୪
( ୬ ସର୍ଗ ବିଶିଷ୍ଟ ଗୀତିକାବ୍ୟ - ଶ୍ରୀକୃଷ୍ଣରୁକ୍ମିଣୀ ବିବାହ)

(୪) ମଧୁରାନିରୁଦ୍ଧ ନାଟକ - ଚୟନି ଚନ୍ଦ୍ରଶେଖର ରାୟଗୁରୁ - ୧୯୭୭
(୮ ଅଙ୍କ ବିଶିଷ୍ଟ ନାଟକ - ଉଷା-ଅନିରୁଦ୍ଧ ବିବାହ)

(୫) ଅଭିନବ ଗୀତଗୋବିନ୍ଦ ମହାକାବ୍ୟ-ଗଜପତି ପୁରୁଷୋତ୍ତମ ଦେବ
୧୯୭୭ (୧୦ସର୍ଗ ବିଶିଷ୍ଟ ଗୀତିକାବ୍ୟ - ରାଧାକୃଷ୍ଣ ପ୍ରେମ)

(୬) ଶିବ ଲୀଳାମୃତ ମହାକାବ୍ୟ-ଅଗ୍ନିଚିତ୍ ନିତ୍ୟାନନ୍ଦ (୧୦ ସର୍ଗ)

(୭) ଅବ୍ଦ ଦୂତ - କୃଷ୍ଣ ଶ୍ରୀଚନ୍ଦନ - ୧୯୭୯
(ମେଘଦୂତ ରୂପେ ସୀତାଙ୍କୁ ବାର୍ତ୍ତା ପ୍ରେରଣ)

(୮) ଧର୍ମଶାସ୍ତ୍ର ଶବ୍ଦକୋଷ - ପଣ୍ଡିତ କୁଳମଣି ମିଶ୍ର ୧୯୮୧
(ଧର୍ମଶାସ୍ତ୍ରରେ ପ୍ରଦତ୍ତ ବିଶେଷ ଶବ୍ଦର ଅଭିଧାନ)-(୧ମ ଭାଗ)

(୯) ଧର୍ମଶାସ୍ତ୍ର ଶବ୍ଦକୋଷ - ୨ୟ ଭାଗ - ୧୯୮୫

(୧୦) ଗୀତ ସୀତାବଲ୍ଲଭ ମହାକାବ୍ୟ - ଶୀତ କଣ୍ଠ - ୧୯୮୬
(୧୨ ଶ ସର୍ଗ ବିଶିଷ୍ଟ ରାମାୟଣ ଆଧାରିତ ଗୀତିକାବ୍ୟ -
ଗୀତ ଗୋବିନ୍ଦର ନିଛକ ଅନୁକୃତି)

(୧୧) ଗୀତଗୋବିନ୍ଦ ମହାକାବ୍ୟ - କବିରାଜ ଜୟଦେବ - ୧୯୮୫
(ପ୍ରାଚୀନତମ ଟୀକା ସର୍ବାଙ୍ଗ ସୁନ୍ଦରୀ ଓ ଶ୍ରୁତିରଞ୍ଜନୀ ସହିତ)
(୧୨) ଶ୍ରୀକୃଷ୍ଣ ଲୀଳାମୃତ ମହାକାବ୍ୟ - ଅଗ୍ନିଚିତ୍ ନିତ୍ୟାନନ୍ଦ - ୧୯୮୬
( ୮ ସର୍ଗ ବିଶିଷ୍ଟ ଶ୍ରୀରାଧାକୃଷ୍ଣ ଲୀଳା ଆଧାରିତ ଗୀତିକାବ୍ୟ)
(୧୩) ମୁକୁନ୍ଦବିଳାସ ମହାକାବ୍ୟ - ଯତୀନ୍ଦ୍ର ରଘୂତ୍ତମ ତୀର୍ଥ - ୧୯୮୮
( ୧୨ ସର୍ଗ ବିଶିଷ୍ଟ ଗୀତିକାବ୍ୟ - ରାଧାକୃଷ୍ଣ ପ୍ରେମ ଲୀଳା
ମାଧ୍ୟମରେ ଅଦ୍ୱୈତବେଦାନ୍ତ ମତ ପ୍ରତିପାଦନ)
(୧୪) ବସନ୍ତୋତ୍ସବ ମହାକାବ୍ୟ - ହଳଧର ମିଶ୍ର - ୧୯୯୨
(୨୨ ସର୍ଗ ବିଶିଷ୍ଟ ମହାକାବ୍ୟ - ଶ୍ରୀ ଜଗନ୍ନାଥଙ୍କ ବାସନ୍ତିକ ଯାତ୍ରା
ଉତ୍ସବ ସମ୍ପର୍କିତ ।
(୧୫) ସୁଲୋଚନା-ମାଧବ ମହାକାବ୍ୟ-ବ୍ରଜସୁନ୍ଦର ପଟ୍ଟନାୟକ -୧୯୯୪
(୧୬ ସର୍ଗ ବିଶିଷ୍ଟ ଅନୁପମ ମାନବୀୟ କାବ୍ୟ)
(୧୬) ଭୃଙ୍ଗଦୂତ - ଚକ୍ରପାଣି - ୧୯୯୫
(ଶ୍ରୀରାଧାଙ୍କ ବାର୍ତ୍ତା ନେଇ ଭୃଙ୍ଗର ମଥୁରାବାସୀ କୃଷ୍ଣଙ୍କ ପାଖକୁ ଯାତ୍ରା)
(୧୭) କ୍ଷୁଦ୍ର ଚମ୍ପୂ ସଂକଳନ - ବିଭିନ୍ନ କବି ପ୍ରଣୀତ - ୧୯୯୫
(ସର୍ବମୋଟ ୮ଟି ଚମ୍ପୂ ସ୍ଥାନିତ)
(୧୮) ସମୃଦ୍ଧମାଧବ ନାଟକ - ଗୋବିନ୍ଦ କବିଭୂଷଣ ସାମନ୍ତରାୟ - ୧୯୯୫
( ୭ଅଙ୍କ ବିଶିଷ୍ଟ ଶ୍ରୀରାଧାକୃଷ୍ଣ ଲୀଳାତ୍ମକ ବିଶିଷ୍ଟ ନାଟକ)
(୧୯) ଶତକମାଳା - ବିଭିନ୍ନ କବିଙ୍କ ରଚିତ - ୧୯୯୫
(୧୦ଟି ଶତକର ସଂଗ୍ରହ)
(୨୦) ରାଘବଯାଦବୀୟ ମହାକାବ୍ୟ - ବସୁ ପ୍ରହରାଜ - ଅପ୍ରକାଶିତ
( ୧୦ ସର୍ଗ ବିଶିଷ୍ଟ ଦ୍ୱିସନ୍ଧାନ କାବ୍ୟ)
(୨୧) ସାହିତ୍ୟାଦର୍ଶ - ଲୋକନାଥ ଦୀକ୍ଷିତ - ଅପ୍ରକାଶିତ
(୫ଟି ପ୍ରକାଶ ସମ୍ବଳିତ ଅଳଙ୍କାର ଶାସ୍ତ୍ର)
(୨୨) ହରି ଭକ୍ତି ସୁଧାକର - ଦୀନବନ୍ଧୁ ମିଶ୍ର - ଅପ୍ରକାଶିତ
(୧୬ କଳାରେ ବିଭକ୍ତ ଭକ୍ତି ଶାସ୍ତ୍ର - ଅପ୍ରକାଶିତ
(୨୩) ଉତ୍କଳୀୟ ସଂସ୍କୃତ ରାଗ ସଙ୍ଗୀତାବଳୀ ( ବିଭିନ୍ନ କବି ବିରଚିତ) ଅପ୍ରକାଶିତ
(୨୬୦ଟି ସଂସ୍କୃତଗୀତର ସମାରୋହ ଓ ସେଗୁଡ଼ିକର ଲକ୍ଷଣ-ଧ୍ୟାନ)

(୨୪) ମହାନାଟକ (ଓଡ଼ିଆ ଅନୁବାଦ ସହିତ) - ୨୦୦୦
(୨୫) ବିଦଗ୍ଧ ମାଧବମ୍ (ସଂସ୍କୃତ ଅନୁବାଦ) ରୂପ ଗୋସ୍ୱାମୀ - ୨୦୦୮

**(ଗ) ଓଡ଼ିଆରେ ସ୍ୱରଚିତ ପୁସ୍ତକର ତାଲିକା :**

(୧) ଓଡ଼ିଶାର ଧର୍ମ (୧ମ, ୨ୟ, ୩ୟ ସଂସ୍କରଣ) - ୧୯୯୧
(୨) ସଂସ୍କୃତ ସାହିତ୍ୟର କ୍ରମ ପରିଣାମ - ୧୯୮୦
(୩) ଭାରତରେ ସୂର୍ଯ୍ୟ ଉପାସନା - ୧୯୮୧
(୪) ଓଡ଼ିଶାରେ ସାମରିକ ପରମ୍ପରା - ୧୯୮୨
(୫) ଉତ୍କଳୀୟ ଧର୍ମଶାସ୍ତ୍ର (ପିଏଚ୍‌ଡ଼ି ନିବନ୍ଧ) - ୧୯୮୫
(୬) ଓଡ଼ିଶାର ପର୍ବପର୍ବାଣି (୧,୨,୩ ଭାଗ) - ୧୯୮୬
(୭) ଆର୍ଯ୍ୟଭାରତ - ୧୯୮୭
(୮) ଜଗନ୍ନାଥ ଦାସ (ଜୀବନୀ) - ୧୯୯୩
(୯) ବୌଦ୍ଧ ରହସ୍ୟ କଥା - ୧୯୯୬
(୧୦) ବୌଦ୍ଧ ଶବ୍ଦକୋଷ - ୧୯୯୭
(ବୌଦ୍ଧ ଧର୍ମ, ଦର୍ଶନ, ତନ୍ତ୍ରରେ ବ୍ୟବହୃତ ଶବ୍ଦାବଳୀ)
(୧୧) ଭାରତରେ ସରସ୍ୱତୀ ଉପାସନା - ୧୯୯୯
(୧୨) ଓଡ଼ିଶାର ଯୋଗିନୀମନ୍ଦିର - ଅପ୍ରକାଶିତ
(୧୩) ଉତ୍କଳୀୟ ଜ୍ୟୋତିଷର ଇତିହାସ - ଅପ୍ରକାଶିତ
(ଧାରାବାହିକ ଭାବରେ ନିୟତି ପତ୍ରିକାରେ ପ୍ରକାଶିତ)

**(ଘ) ସଂସ୍କୃତରେ ରଚିତ ପୁସ୍ତକାବଳୀ :**

(୧) ରାଷ୍ଟ୍ର ଭାରତୀ ସଂସ୍କୃତ ଭାଷା - ୧୯୮୩
(୨) ଶିବ ସହସ୍ରନାମ ଶତକମ୍ - ୧୯୮୭
(୩) ଶ୍ରୀ ଜଗନ୍ନାଥ ସହସ୍ରନାମ ଶତକମ୍ - ଅପ୍ରକାଶିତ
(୪) ଶ୍ରୀଦୁର୍ଗା ସହସ୍ରନାମ ଶତକମ୍ - ଅପ୍ରକାଶିତ
(୫) ଶ୍ରୀ ଗୌରୀ ଶତକମ୍ - ୨୦୦୧

**(ଙ) ଓଡ଼ିଆ ଅନୂଦିତ ପୁସ୍ତକ ସମୂହ :**

(୧) ଭାଗବତ କଥା (ହିନ୍ଦୀରୁ) ୧୨ଖଣ୍ଡ - ୧୯୮୨-୮୫
(୨) ମେଘଦୂତ (ସଂସ୍କୃତରୁ) (୧ମ,୨ୟ ସଂସ୍କରଣ) - ୧୯୯୩
(୩) ବିଷ୍ଣୁଗୁପ୍ତ (ହିନ୍ଦୀରୁ) ଉପନ୍ୟାସ - ୧୯୮୯

(୪) ଜ୍ଞାନସିଦ୍ଧି (ସଂସ୍କୃତରୁ) - ୧୯୮୫
(୫) କବି ଜୟଦେବ ଚରିତ (ସଂସ୍କୃତରୁ) - ୧୯୮୬
(୬) କୁମାର ସମ୍ଭବ (ସଂସ୍କୃତରୁ) - ୧୯୮୬
(୭) ଭର୍ତ୍ତୃହରି ନୀତିଶତକ (ସଂସ୍କୃତରୁ) - ୧୯୮୯
(୮) ଶୃଙ୍ଗାର ଶତକ (ସଂସ୍କୃତରୁ) - ୧୯୮୯
(୯) ତତ୍ରୈବ - ଶୃଙ୍ଗାର ଶତକ (ସଂସ୍କୃତରୁ) - ୧୯୯୯
(୧୦) ଅମରୁ ଶତକ - (ସଂସ୍କୃତରୁ) - ୧୯୯୩
(୧୧) ନୀତିରତ୍ନମାଳା - (ସଂସ୍କୃତରୁ) (୨ୟ ସଂସ୍କରଣ)- ୧୯୯୦
(୧୨) ସମ୍ବୁଦ୍ଧ ଜାତକ - (ବଙ୍ଗଳାରୁ) - ୧୯୯୭
(୧୩) ପ୍ରଜ୍ଞୋପାୟବିନିଶ୍ଚୟସିଦ୍ଧିଃ (ସଂସ୍କୃତରୁ) - ପ୍ରକାଶିତ
(୧୪) ଭଗବତୀ ଗୀତା (ସଂସ୍କୃତରୁ) - ଅପ୍ରକାଶିତ

**(ଚ) ଇଂରାଜୀ -ହିନ୍ଦୀଭାଷାରେ ରଚିତ ପୁସ୍ତକ :**

(୧) Marital Tradition of Odisha - 1982
(୨) ଆର୍ଯ୍ୟଭାରତ (ହିନ୍ଦୀ) ପ୍ରକାଶିତ
(୩) SriJayadev (English) - ଅପ୍ରକାଶିତ
(୪) ଓଡ଼ିଆ ଓ ଇଂରାଜୀରେ ଲିଖିତ ୧୨୦ଟି ଲୋକପ୍ରିୟ ପ୍ରବନ୍ଧ, ବିଭିନ୍ନ ପତ୍ରିକାରେ ପ୍ରକାଶିତ

**(ଛ) ବିଶେଷ ଓ ଦୀର୍ଘ ପ୍ରବନ୍ଧ :**

**(ପତ୍ରିକା ଓ ପୁସ୍ତକରେ ଉପାଦେୟ ଅଧ୍ୟାୟ ଭାବେ ସଂଯୋଜିତ)**

(୧) (କ) କୋଣାର୍କ (ସ୍ୱତନ୍ତ୍ର ସଂଖ୍ୟା - ୧୯୭୧) ।
(ଖ) ଓଡ଼ିଶାର ସାଂସ୍କୃତିକ ଇତିହାସ, ୧୯୮୨ ।

(୨) Eastern Zonal Cultural Convension - 1978 // International Folk Culture - 1978 // Culture - 1978 // Heritage of Odisha - 1980 // Silver Jubilee Vol of Odisha Sahitya Academy - 1982 // Golden Jubilee Vol of Odisha Historical Research Journal - 1984 // Ramayan in Eastern India - 1987 // studies in Saivism - 1993 // Journal of Kala Vikash Kendra - 1994 // Studies in Budhism - 1995 // Studies in Shaktism - 1995 // Studies in Sri Jagannath Cult in 1995 // Maritime activities and Trade in Odisha - 1996 // Aspects of Solio-Cultural life in Early and Mediaval Odisha, 1996 // Studies in Dharama Sastra - 1996 // Education through the Ages - 1997

ସ୍ୱର୍ଗତ ପଣ୍ଡା, ରାଜ୍ୟ, ରାଷ୍ଟ୍ରୀୟ ତଥା ଆନ୍ତର୍ଜାତୀୟ ସ୍ତରରେ ଅନୁଷ୍ଠିତ ଏଗାରଗୋଟି ପାଠଚକ୍ର (ଆଲୋଚନା ଚକ୍ର)ରେ ଯୋଗଦାନ କରି ସ୍ୱରଚିତ ଗବେଷଣାମୂଳକ ପ୍ରବନ୍ଧ ପାଠ ସହିତ, ବିତର୍କରେ ଭାଗ ନେଇ ଉଚ୍ଚ ପ୍ରଶଂସିତ ହୋଇଥିଲେ ।

## ବିଦ୍ୟାବିନୟୀ : ପଣ୍ଡିତ ଭଗବାନ ପଣ୍ଡା :

ପଣ୍ଡିତ ଭଗବାନ ପଣ୍ଡାଙ୍କୁ ଲୋକମାନେ ଅତିନିକଟରୁ ଦେଖିଛନ୍ତି ଓ ତାଙ୍କର ସାନ୍ନିଧ୍ୟ ଲାଭ କରିଛନ୍ତି । ସମସ୍ତେ ତାଙ୍କର ବିନମ୍ର ବ୍ୟବହାର, ସୁଶୀଳତା, ବିଦ୍‌ବତ୍ତା, ଗୁରୁ ଓ ଅଭିଭାବକ ତୁଲ୍ୟ ବ୍ୟବହାର, ପରୋପକାରିତା, ସରଳ ଅମାୟିକ ବ୍ୟବହାରର ଉଚ୍ଚ ପ୍ରଶଂସା କରିଛନ୍ତି । ଜୀବନର ଅଶେଷ କଷ୍ଟ ଗ୍ଲାନି, ଅବସୋସକୁ ଆକଣ୍ଠ ପାନ କରି, ସେ ଦୃଢ଼ ଅବିଚଳ ରହି ଏକ ବିପୁଳ ସାରସ୍ୱତ ସୃଷ୍ଟିର ଅଧିକାରୀ ହୋଇଯାଇଥିଲେ । ସେ ନିଜ ଅନୁଗତ ଛାତ୍ର, ଯୁବ-ଗବେଷକ, ସାହିତ୍ୟାଭିଳାଷୀ ବ୍ୟକ୍ତି ବିଶେଷଙ୍କୁ ନିରନ୍ତର ପ୍ରୋତ୍ସାହନ ଏବଂ ପ୍ରେରଣା ଯୋଗାଇ ସେମାନଙ୍କୁ ନିଜ ଗୋଡ଼ରେ ଠିଆ ହେବାକୁ ସମର୍ଥ କରିଥିଲେ ।

ସେ ଯେଉଁଠାକୁ ଯାଉଥିଲେ, ସଭାରେ ବକ୍ତୃତା ଦେଉଥିଲେ ଏପରିକି କର୍ମକ୍ଷେତ୍ରରେ ବ୍ୟସ୍ତ ଥିବା ଅବସ୍ଥାରେ ମଧ୍ୟ ଏହି ବିଦ୍ୱାନ ପୁରୁଷଙ୍କଠାରୁ କିଛି ମାର୍ଗ ନିର୍ଦ୍ଦେଶନା, କିଛି ଅସମାହିତ ପ୍ରଶ୍ନର ଉତ୍ତର ଜାଣିବାକୁ ବା କିଛି ସମୟ ସାଧୁସଙ୍ଗ ଆଶାରେ, ଜ୍ଞାନପିପାସୁ ଗବେଷକ ଛାତ୍ର, ଶିକ୍ଷାର୍ଥୀ ତାଙ୍କ ସଂସ୍ପର୍ଶରେ ଆସିବାକୁ ବିଭୁ ଆଶୀର୍ବାଦ ମଣୁଥିଲେ । କେଦାରନାଥ ଗବେଷଣା ପ୍ରତିଷ୍ଠାନର ସୁଯୋଗ୍ୟ ସଭାପତି ଶ୍ରୀଯୁକ୍ତ ରଘୁନାଥ ମିଶ୍ରଙ୍କ ମତରେ- "ଏହି ପ୍ରଚଣ୍ଡ ପ୍ରତିଭାଧର ତଥା ରାଷ୍ଟ୍ରପତି ପୁରସ୍କାର ପ୍ରାପ୍ତ ସଂସ୍କୃତ ବିଦ୍ୱାନ୍ ତଥା ଜ୍ଞାନତପସ୍ୱୀ ଡକ୍ଟର ପଣ୍ଡା ଅଗଣିତ ଛାତ୍ର, ଶିକ୍ଷକ, ଅନିସନ୍ଧିତ୍ସୁ ତଥା ବିଦେଶୀ ଗବେଷକ, ପର୍ଯ୍ୟଟକଙ୍କ ପାଇଁ ଥିଲେ ଅନୁପ୍ରେରଣାର ଅସରନ୍ତି ଉତ୍ସ । କେଦାରନାଥ ଗବେଷଣା ପ୍ରତିଷ୍ଠାନର ସୁଯୋଗ୍ୟ ସମ୍ପାଦକ ଭାବରେ ତାଙ୍କର ଅବଦାନ ଓ ପ୍ରତିବଦ୍ଧତା ଅତୁଳନୀୟ ।"

ସେ କିପରି ଚାଷୀମୂଲିଆ, ସାଧାରଣ ଗାଉଁଲି ମଣିଷଠାରୁ ଉଚ୍ଚଶାସନାଧିକାରୀ ପର୍ଯ୍ୟନ୍ତ ସ୍ୱଚ୍ଛନ୍ଦ ଓ ସରଳରେ ଆଳାପ କରୁଥିଲେ । ତାହା 'ଧଡ଼କ' ନାମକ ସଂପର୍କୀୟ ସାନଭାଇଙ୍କ ସ୍ମୃତିଚାରଣରୁ ଜଣାଯାଏ –

xxx "ପିଲାଦିନ କଥା । ସେତେବେଳେ ମୁଁ ସାଇଁଗିଡି ଶାସନରେ ଥାଏ, ସମସ୍ତଙ୍କ ଠାରୁ ଖବର ପାଇଲି ଗାଁକୁ ନନା (ଭଗବାନ) ଆସିଛନ୍ତି । ମୁଁ ବିଲକୁ ଯିବାପାଇଁ ହାତରେ ବାଡ଼ି ଓ କାନ୍ଧରେ ଗାମୁଛା ପକାଇଥାଏ । ସିଧା ଯାଇ ପହଞ୍ଚିଗଲି ଶାସନର ଶେଷ ମୁଣ୍ଡରେ ଥିବା ନନାଙ୍କ ଘରେ । ସେତେବେଳେ ସେ ଦାଣ୍ଡପିଣ୍ଡାରେ ବିରାଜମାନ । ତାଙ୍କୁ ପ୍ରଣାମ କରିବାରୁ ସେ ମୋତେ ବହୁତ କଲ୍ୟାଣ କଲେ, ଯାହା ମୋ ଜୀବନର ପାଥେୟ ହେଲା । ମୁଁ ସଂସ୍କୃତ ପଢୁଥିବା ଜାଣି ସେ ଖୁସିରେ ସଳଖ ହୋଇ ବସିଲେ । ଚାକିରି ମଧ୍ୟ କଲି ତାଙ୍କ ଅନୁଗ୍ରହରୁ । ସେ ଚାହୁଁଥିଲେ ମୁଁ ତାଙ୍କ ତତ୍ତ୍ୱାବଧାନରେ ପିଏଚ୍.ଡି କରିବାକୁ । ମୁଁ ହତଭାଗା ତାଙ୍କର ଆଶା ପୂରଣ କରିପାରିଲି ନାହିଁ ।"

ସ୍ୱର୍ଗତଃ ପଣ୍ଡାଙ୍କର ଆତ୍ମୀୟତାର ଏହା ଏକ କ୍ଷୁଦ୍ର ଚିତ୍ରପଟ ମାତ୍ର । କନିଷ୍ଠଙ୍କ ପ୍ରତି ତାଙ୍କର ନିଷ୍କପଟ ଶ୍ରଦ୍ଧା, ପିତୃପ୍ରତିମ ଭାବ, ବନ୍ଧୁମାନଙ୍କ ପ୍ରତି ଆତ୍ମୀୟତା, ଅଧସ୍ତନ କର୍ମଚାରୀଙ୍କ ପ୍ରତି ଉଦାରଶୀଳତା, ସ୍ନେହୀଭାବ ସେ ସକ୍ରିୟ ଥିବା ପର୍ଯ୍ୟନ୍ତ ବଜାୟ ରଖିଥିଲେ ।

## ସ୍ମୃତିରେ ଓ ଅନୁଭୂତିରେ ପଣ୍ଡିତ ଭଗବାନ ପଣ୍ଡା :

ଡକ୍ଟର ପଣ୍ଡାଙ୍କର ଅବର୍ତ୍ତମାନରେ ତାଙ୍କର ଅନେକ ଅନ୍ତରଙ୍ଗ ବନ୍ଧୁ, ସହକର୍ମୀ, ଅନୁଗତ ଛାତ୍ର, ଅଧସ୍ତନ କର୍ମଚାରୀ, ତାଙ୍କ ଜୀବନଯାପନ ଶୈଳୀ, କର୍ମକ୍ଷେତ୍ରରେ କାର୍ଯ୍ୟଧାରା, ତାଙ୍କର ସ୍ୱଭାବ, ପ୍ରକୃତି ଓ ଚାଲିଚଲଣିର କୌତୁକପ୍ରଦ କଥା ସମସ୍ତଙ୍କ ଦୃଷ୍ଟି ଆକର୍ଷଣ କରିଛି । "ଡଃ ଭଗବାନ ପଣ୍ଡା ଏକ ସ୍ମରଣୀୟ ବ୍ୟକ୍ତିତ୍ୱ"-ଲେଖାରେ ନିଜର ମତାମତ ଉପସ୍ଥାନ କରିଛନ୍ତି ସଂସ୍କୃତି ବିଭାଗର ଅବସରପ୍ରାପ୍ତ ଉପନିର୍ଦ୍ଦେଶକ ଶ୍ରୀମତୀ ପ୍ରମିଳା ମିଶ୍ର ।

"ଓଡ଼ିଶା ସରକାରଙ୍କ ସଂସ୍କୃତି ବିଭାଗ ଅନ୍ତର୍ଗତ ପ୍ରକାଶନୀ ସଂସ୍ଥାରେ ୧୯୬୯ ମସିହାରୁ ଭଗବାନ ବାବୁ ଓ ମୁଁ ୨୫/୨୬ ବର୍ଷ ସହକର୍ମୀ ଥିଲୁ । ରାଜ୍ୟ ସଂଗ୍ରହାଳୟରେ ସଂରକ୍ଷିତ ଥିବା ପୁରାତନ ନଷ୍ଟପ୍ରାୟ ତାଳପତ୍ର ପୋଥି ଗୁଡ଼ିକର ସଂପାଦନା କାର୍ଯ୍ୟ ଆମେ କରୁଥିଲୁ । ଏଣୁ ଉଭୟ ପରିବାର ମଧ୍ୟରେ ଘନିଷ୍ଠ ସମ୍ପର୍କ ଗଢ଼ି ଉଠିଥିଲା । xxx ଡ. ପଣ୍ଡାଥିଲେ ସାଧାସିଧା ନିରଳସ ମଣିଷଟିଏ । ପ୍ରତ୍ୟହ ଶୁଭ୍ର ବସ୍ତ୍ର ପରିଧାନ କରି ଚାଲି ଚାଲି ଯଥା ସମୟରେ ଅଫିସକୁ ଆସିବା ପରଠାରୁ

କାର୍ଯ୍ୟାଳୟ ଛୁଟି ହେବା ପର୍ଯ୍ୟନ୍ତ ନିରବଚ୍ଛିନ୍ନ ଭାବରେ ତଳକୁ ମୁହଁ ପୋତି ପାଣ୍ଡୁଲିପି ସମ୍ପାଦନା କାର୍ଯ୍ୟ କରୁଥିଲେ । ମଝିରେ ଅତି ସାମାନ୍ୟ ବିରତି ବ୍ୟତୀତ କେହି କେବେ ତାଙ୍କୁ କ୍ଳାନ୍ତ ହୋଇ ଚଉକିରେ ବସିବାର ଦେଖିନାହାନ୍ତି । ପ୍ରତିଦିନ ବହୁ ଗଣ୍ୟମାନ୍ୟବ୍ୟକ୍ତି, ଦେଶବିଦେଶର ଗବେଷକ ତଥା ବନ୍ଧୁ ବିଭିନ୍ନ ଉଦ୍ଦେଶ୍ୟରେ ତାଙ୍କ ନିକଟକୁ ଆସୁଥିଲେ । ସେ ସେମାନଙ୍କୁ ଯଥାରୀତି ମାନ୍ୟ ସହିତ ସାହାଯ୍ୟ ଓ ପରାମର୍ଶ ଦେଉଥିଲେ । ବିଦ୍ୟାଦାନ ମହାପୁଣ୍ୟ ସେ ଭାବୁଥିଲେ । ଜ୍ଞାନଗର୍ଭକ ଓ ବହୁତ ମଜାଳିଆ କଥା କହି ସବୁରି ମନୋରଞ୍ଜନ କରିବା ତାଙ୍କର ଅନ୍ୟତମ ବିଶେଷ ପରିଚୟ ଥିଲା ।"

ସ୍ୱର୍ଗତ ପଣ୍ଡାଙ୍କ ସହିତ ଆତ୍ମୀୟତା ହେତୁ ଶ୍ରୀମତୀ ମିଶ୍ର ପୁନଶ୍ଚ ଉଲ୍ଲେଖ କରିଛନ୍ତି ତାଙ୍କ ପରିବାର କଥା – "ସମସ୍ତେ ଜୀବଦଶାରେ ବାଧାବିଘ୍ନ ଝଡ଼ଝଞ୍ଜାର ସମ୍ମୁଖୀନ ହୁଅନ୍ତି । ଭଗବାନ ବାବୁଙ୍କ ଜୀବନରେ ବ୍ୟତିକ୍ରମ ବା କିପରି ହୋଇଥାନ୍ତା ? ପତ୍ନୀ ତାଙ୍କର ଥିଲେ ଚିରରଗ୍‌ଣା । ଯାବତୀୟ ପ୍ରତିକୂଳ ପରିସ୍ଥିତି ମଧ୍ୟରେ ତାଙ୍କର କର୍ତ୍ତବ୍ୟ ସମ୍ପଦନାରେ ଆଦୌ ଅବହେଳା କରିନାହାନ୍ତି । କୌଣସି ସଭା-ସମିତି ସାମାଜିକ କାର୍ଯ୍ୟରେ ସେ ଯଥା ସମୟରେ ଉପସ୍ଥିତ ରହି ଦାୟିତ୍ୱ ତୁଲାଇଥିଲେ । xx ତାଙ୍କର ଦୈନନ୍ଦିନ ଜୀବନଚର୍ଯ୍ୟା ଥିଲା-ଅତି ଶୃଙ୍ଖଳିତ ଓ ଆଡମ୍ବର ଶୂନ୍ୟ । ଯେକୌଣସି ପରିସ୍ଥିତିରେ ଘରର ସମଗ୍ର ସ୍ଥାନ ପରିଷ୍କାର ଥିବାର ମୁଁ ଦେଖିଛି । ଏକଦା ଏକ ଛୋଟ ଭଡ଼ାଘରେ ସେ ରହୁଥିଲେ । ଘରର ନିର୍ମଳ ପରିବେଶ ମୋତେ ଚମତ୍‌କୃତ କରିଥିଲା । ତାଙ୍କର ପରିଚାଳନାଗତ ଦକ୍ଷତା ଏବଂ ଶୃଙ୍ଖଳାବୋଧ ମୋତେ ଚମତ୍‌କୃତ କରିଥିଲା । xx ସବୁଠାରୁ ବିଶେଷ କଥା ହେଲା ମୋ ପିଲାମାନଙ୍କର ବ୍ରତୋପନୟନଠାରୁ ଆରମ୍ଭ କରି ବିବାହ ଓ ନାତିର ବ୍ରତୋପନୟନ ଯାଏ ତାଙ୍କର ସ୍ୱେଚ୍ଛାକୃତ ସାହାଯ୍ୟ ଭୁଲି ହେବନାହିଁ । xxx ସ୍ୱ ପଣ୍ଡିତ ନୀଳମଣି ମିଶ୍ର ଓ ଭଗବାନ ବାବୁଙ୍କ ସହିତ ଆମ ପରିବାର ରତ୍ନଗିରି, ଲଳିତଗିରି ଠାରୁ ଆରମ୍ଭ କରି ହରିଶଙ୍କର, ନୃସିଂହନାଥ, ଚଉଷଠୀ ଯୋଗିନୀଯାଏ ଓଡ଼ିଶାର ବହୁ ପ୍ରତ୍ନତାତ୍ତ୍ୱିକ ଦର୍ଶନୀୟ ସ୍ଥଳୀ ଦର୍ଶନ କରି ଅନେକ କଥା ଜାଣିବାକୁ ପଡିଲା ।"

ଏଥିରୁ ଡ. ପଣ୍ଡାଙ୍କ ବନ୍ଧୁବତ୍ସଳତା, ସ୍ନେହାଦର ତଥା ଆନ୍ତରିକତା ଉପଲବ୍ଧି ହୁଏ । ପ୍ରାକ୍ତନ ଉପସଭାପତି ଡଃ ଗୋପାଳ କୃଷ୍ଣ ଶ୍ରୀଚନ୍ଦନ ନିଜ ଅନୁଭୂତି ସମ୍ପର୍କରେ କହନ୍ତି– "ମୁଁ ଉତ୍କଳ ସମ୍ମିଳନୀର ସଚିବ ଥିବାବେଳେ, ଭଗବାନ ବାବୁଙ୍କୁ ଉତ୍କଳ

ସମ୍ମିଳନୀ ସହ ସଂପୃକ୍ତ କରିଥିଲି । ଓଡ଼ିଆ ବ୍ୟାକରଣ ଓ ବର୍ଣ୍ଣବୋଧ ଉପରେ ଉତ୍କଳ ସମ୍ମିଳନୀ ତରଫରୁ ଅନୁଷ୍ଠିତ ଆଲୋଚନା ଚକ୍ରରେ ସଂଯୋଜକ ଭାବେ ଭଗବାନ୍ ବାବୁ ଦାୟିତ୍ୱ ତୁଲାଉଥିଲେ ।”

**ସମ୍ମାନ-ସମ୍ବର୍ଦ୍ଧନା ଓ ପୁରସ୍କାର :**

ଏହି ସିଦ୍ଧ ସାରସ୍ୱତପୁରୁଷଙ୍କୁ ନିଜର ସାରସ୍ୱତ କୃତି ନିମିତ୍ତ ଅନେକ ଅନୁଷ୍ଠାନ ତରଫରୁ ସମ୍ବର୍ଦ୍ଧନା ଓ ସମ୍ମାନ ମିଳିଛି । ସେଗୁଡ଼ିକ ମଧ୍ୟରୁ କେତେଗୋଟି ହେଲା-

୧) ଶ୍ରୀ ଜଗନ୍ନାଥଙ୍କ ପୁରୋହିତଙ୍କ ଦ୍ୱାରା ‘ସାହିତ୍ୟବିନୋଦ’ (୧୯୬୫) ଉପାଧି ପ୍ରଦାନ । ସେତେବେଳେ ସେ ‘ଓଡ଼ିଶା ସଂସ୍କୃତ ସମିତି’ର ସହସମ୍ପାଦକ ଥିଲେ ।

୨) ଫାଲ୍‌ଗୁନୀ ସମ୍ମାନ (୧୯୮୪) । ସେତେବେଳେ ସେ ସଂସ୍କୃତି ନିର୍ଦ୍ଦେଶାଳୟରେ ସମ୍ପାଦକ ଥିଲେ ।

୩) କ୍ଷେତ୍ରବାସୀ ସାହିତ୍ୟବିଦ୍ୟା ପୁରସ୍କାର (୧୯୯୫) । (ସଂସ୍କୃତି ନିର୍ଦ୍ଦେଶାଳୟରେ ଉପନିର୍ଦ୍ଦେଶକ ଥିବା ବେଳେ)

୪) ଜୟଦେବ ସମ୍ମାନ (ଓଡ଼ିଶା ସରକାର) ୨୦୦୧ । ଅବସର ପରେ ଆହୁରି ଅନେକ ସମ୍ମାନ-ସମ୍ବର୍ଦ୍ଧନା ଲାଭ କରିଥିଲେ ଏହି ଲବ୍ଧ ପ୍ରତିଷ୍ଠ ଗବେଷକ ଜଣକ ।

୫) କେଦାରନାଥ ଗବେଷଣା ପ୍ରତିଷ୍ଠାନର ପ୍ରତିଷ୍ଠାତା ସଦସ୍ୟ ଡ. ପଣ୍ଡାଙ୍କୁ ପ୍ରତିଷ୍ଠାନ ତରଫରୁ ୨୦୦୭ ମସିହାରେ ଏହାର ୨୫ତମ ରୌପ୍ୟ ଜୟନ୍ତୀ ଉତ୍ସବରେ ଓଡ଼ିଶା ରାଜ୍ୟପାଳ ମୁରଲୀଧର ଚନ୍ଦ୍ରକାନ୍ତ ଭଣ୍ଡାରେ ତାଙ୍କର ଅବଦାନ ନିମିତ୍ତ ସମ୍ବର୍ଦ୍ଧିତ କରିଛନ୍ତି ।

୬) ଡ. ପଣ୍ଡା କେଦାରନାଥ ଗବେଷଣା ପ୍ରତିଷ୍ଠାନ ତରଫରୁ ସଂସ୍କୃତ ସାହିତ୍ୟ ନିମିତ୍ତ ୨୦୧୦ରେ ମଧ୍ୟ ସମ୍ମାନିତ ହୋଇଛନ୍ତି । ସେ ସେତେବେଳେ ଅସୁସ୍ଥ ଥାଇ ସ୍ୱଗୃହରେ ଚିକିତ୍ସିତ ହେଉଥିବାରୁ, ତତ୍କାଳୀନ ସଭାପତି ଶ୍ରୀଯୁକ୍ତ ଗୁଣନିଧି ମହାପାତ୍ର ତଥା ସମ୍ପାଦକ ଶ୍ରୀଯୁକ୍ତ ଭାଗୀରଥି ମହାପାତ୍ର ତାଙ୍କ ଗୃହକୁ ଯାଇ ସମ୍ବର୍ଦ୍ଧନା ପ୍ରଦାନ କରିଥିଲେ ।

୭)   ତା. ୦୬.୦୫.୨୦୧୧ ରେ ରାଷ୍ଟ୍ରପତି ଶ୍ରୀମତୀ ପ୍ରତିଭା ପାଟିଲଙ୍କ ଠାରୁ 'ମହର୍ଷି ଭଦ୍ରାୟନ ବ୍ୟାସ ସମ୍ମାନ' ଗ୍ରହଣ କରିଥିଲେ । ଅସୁସ୍ଥ ଅବସ୍ଥାରେ ହୁଇଲ୍ ଚେୟାର୍‌ରେ ବସି ପରିଜନଙ୍କ ସହିତ ଦିଲ୍ଲୀରେ ଉପସ୍ଥିତ ହୋଇ ଏହି ସମ୍ମାନ ଗ୍ରହଣ କଲାବେଳେ ସେ ଆତ୍ମହରା ହୋଇ ପଡିଥିଲେ ।

ଏହି କୃତବିଦ୍ୟ ସାରସ୍ୱତ ସାଧକଙ୍କ ପ୍ରତି ଏହାହିଁ ଥିଲା ଶ୍ରେଷ୍ଠ ସମ୍ମାନ, ଯାହା ନିଜ ମାତୃଭୂମି ପାଇଁ ଗୌରବ ଆଣି ଦେଇଥିଲା ।

## ଅନ୍ତିମ କାଳ - ଶେଷଯାତ୍ରା :

ଦେହାନ୍ତର ଅନ୍ତତଃ ୫ ବର୍ଷ ପୂର୍ବରୁ ସ୍ମୃତିଶକ୍ତି ହରାଇବା ସହିତ ନାନା ରୋଗର ଲକ୍ଷଣ ତାଙ୍କଠାରେ ଦେଖାଦେଇଥିଲା । ଏ ସମ୍ବନ୍ଧରେ ପଡ଼ୋଶିନୀ ଜୟଶ୍ରୀ ପଟ୍ଟନାୟକଙ୍କ ଏକ ସ୍ମୃତିଚାରଣରୁ କିୟଦଂଶ ଏଠାରେ ଉଲ୍ଲେଖ କରାଯାଇଛି - "(ଭଗବାନ) ମଉସାଙ୍କ ଜୀବନ ଚଳଣିରେ ଠିକ୍ ଠାକ୍ ଥିବା ବେଳେ ହଠାତ୍ ଦିନେ ତାଙ୍କ ଘରେ ତଳେ ପଡିଗଲେ । ଖବର ପାଇ ପହଞ୍ଚିଗଲି । ପୁଅ ଓ ବୋହୂଙ୍କ ଠାରୁ ଜାଣିବାକୁ ପାଇଲି ତାଙ୍କର ଡାହାଣପାଖ ପକ୍ଷାଘାତ ହୋଇଛି । ମୁଁ ନିଜେ ପ୍ରାକୃତିକ ଚିକିତ୍ସା (Accupressure) କରୁଥିବାରୁ ସେହି ସାହସରେ ଘର ଲୋକଙ୍କ ଉପସ୍ଥିତିରେ ମଉସାଙ୍କ ଚିକିତ୍ସା ଆରମ୍ଭ କରିଦେଲି । ପ୍ରଥମ ଦିନର ଚିକିତ୍ସା ପ୍ରୟୋଗରେ ସେ ଶାନ୍ତିରେ ନିଦ୍ରାଗଲେ । ଦ୍ୱିତୀୟ ଦିନ ଚିକିତ୍ସା ପରେ ତାଙ୍କର ଡାଏବେଟିସ୍ ଏବଂ ଉଚ୍ଚରକ୍ତଚାପ ସାଧାରଣ ଅବସ୍ଥାକୁ ଆସିଗଲା । ସେ ସୁସ୍ଥ ଅନୁଭବ କଲେ । ଖୁସିରେ କଥାବାର୍ତ୍ତା କଲେ । ଏହାପରେ ଜଣକ ସହାୟତାରେ ଚାଲିବା ଅଭ୍ୟାସ କଲେ । ସେ ଭଲ ମଣିଷଟିଏ ଥିଲେ । ମଣିଷ ଜୀବନର ମୂଲ୍ୟ ଭଲଭାବରେ ତାଙ୍କୁ ଜଣାଥିବାରୁ ମୋତେ ପ୍ରଶଂସା କରି କହୁଥିଲେ "ସେବା ଓ ସହାନୁଭୂତିଶୀଳ ନ ହେଲେ ତ୍ୟାଗ କରିହୁଏ ନାହିଁ ।"

ଏଥିରୁ ଜଣାଯାଏ, ସେ ଦୀର୍ଘ ସମୟ ଧରି ସ୍ୱଗୃହରେ ଆବଦ୍ଧ ରହି ନାନା ରୋଗର ବିତପାତ୍ ସହିଥିଲେ । ତା ସତ୍ତ୍ୱେ ସେ ପରିବାରର ମୁରବି ଭାବରେ ନିଜର ଦାୟିତ୍ୱ ସମ୍ପାଦନ କରି ଆସିଛନ୍ତି । ତାଙ୍କର ମାର୍ଗଦର୍ଶନ ଓ ପ୍ରେରଣାରେ ଉଦ୍‌ବୁଦ୍ଧ ହୋଇଥିବା ତଥା ଓଡ଼ିଶା ରାଜ୍ୟ ସଂଗ୍ରହାଳୟର ଅବସରପ୍ରାପ୍ତ କ୍ୟୁରେଟର୍-ଶ୍ରୀମତୀ କୁମୁଦିନୀ ଆଚାର୍ଯ୍ୟ କହନ୍ତି - "ସାର୍, ଦୀର୍ଘ ଅସୁସ୍ଥତା ଭୋଗୁଥିବା ସହଧର୍ମିଣୀଙ୍କର ସେବାଯତ୍ନ, ନିତିଦିନିଆ ତେଲଲୁଣ ସଂସାରର ଦାୟିତ୍ୱ, ବହୁ କୁଟୁମ୍ବୀ ପିତାର

ସନ୍ତାନଙ୍କ ପ୍ରତି କର୍ତ୍ତବ୍ୟବୋଧ, ତଥା ସୀମିତ ସମ୍ବଳ ମଧ୍ୟରେ ଜୀବନ ନିର୍ବାହ ଏକ ଉତ୍ସର୍ଗୀକୃତ ଜୀବନର ଦୃଷ୍ଟାନ୍ତ । ଭାଗ୍ୟର ବିଡମ୍ବନା, ପତ୍ନୀଙ୍କର ୨୦୦୫ ମସିହାରେ ମୃତ୍ୟୁପରେ ଡ. ପଣ୍ଡା ନିଃସଙ୍ଗ ହୋଇ ମାନସିକ ଯନ୍ତ୍ରଣା ମଧ୍ୟରେ କାଳ କାଟୁଥିଲେ ।”

ଶେଷ ନିଶ୍ୱାସ ତ୍ୟାଗ ବେଳର କରୁଣ କାହାଣୀର ଦୁଃଖଦ ଚିତ୍ର ଡକ୍ଟର ପଣ୍ଡାଙ୍କ ଦ୍ୱିତୀୟ ପୁତ୍ର ସଞ୍ଜୟ କୁମାର ପଣ୍ଡାଙ୍କ ସଂସ୍ମରଣରୁ ଜଣାପଡ଼େ ।

xx ସେ ଦିନ (ଅର୍ଥାତ୍ ତା ୨୭.୬.୨୦୧୩) ସତେ ଯେମିତି କେହି ମୋତେ କହୁଥିଲା, ଆଜି କୁ କେଉଁଆଡ଼େ ଯାଆ ନାହିଁ । ନିଶ୍ଚୟ ଅଘଟଣ ଘଟିବ । ତେଣୁ ମୁଁ କୁଆଡ଼େ ନଯାଇ, ସକାଳଠାରୁ ବାପାଙ୍କ ମଳମୂତ୍ର ଇତ୍ୟାଦି ସଫା କଲି । ଡେଟଲ୍ ପାଣିରେ ଧୋଇଲି । ସକାଳେ କିଛି ଖାଇବାକୁ ଦେଲାପରେ ସେ ଟିକେ ଶାନ୍ତିରେ ଶୋଇପଡ଼ିଲେ । ଦିନ ୧୧ଟାରେ ଉଠାଇ ଖୁଆଇବାରୁ ଅଧା ଅଧା ଢ଼ୋକିଲେ । ବହୁ କଷ୍ଟରେ ପାଣି ତଣ୍ଟିରେ ଗଳିଲା । ଅପରାହ୍ନ ୪ଟା ବେଳେ ପଣ୍ଡିତ ଶଶିଧର ମିଶ୍ର ଘରକୁ ଆସି ଘଣ୍ଟାଏ ବିତାଇଲେ । ଏହାପରେ ଶଶି ମଉସା କହିବାରୁ ମୁଁ ତାଙ୍କୁ ନେଇ ତାଙ୍କ ଘରେ ଛାଡ଼ି, ଘରେ ପହଞ୍ଚିଲା ବେଳକୁ ଯାହା ଦେଖିଲି; ତାହା ମୋର ଚେତା ହଜାଇଦେଲା । ସମସ୍ତେ ଭୋ ଭୋ କାନ୍ଦୁଥିଲେ । ସାନଭାଇ ଅକ୍ଷୟର ଏକମାତ୍ର ପୁଅ ବାୟା (୩ ବର୍ଷ) କାନ୍ଦି କାନ୍ଦି ତଳେ ଲୋଟୁଥିଲା । ମୋର ଗୋଡ ହାତ ଅବଶ ହୋଇପଡ଼ିଲା । ତଥାପି ସାହସ ବାନ୍ଧି, ପରବର୍ତ୍ତୀ କାର୍ଯ୍ୟ ପାଇଁ ପ୍ରସ୍ତୁତ ହେଲି ।”

ଡକ୍ଟର ପଣ୍ଡା, ତାଙ୍କର ଚିରାଚରିତ ଇହଲୀଳା ସାଙ୍ଗ କଲେ ତା.୨୭.୬.୨୦୧୩ ସନ୍ଧ୍ୟା ୫.୩୦ ରେ । ତାଙ୍କର ଶେଷ ଦର୍ଶନ ପାଇଁ ବହୁ ଶୁଭେଚ୍ଛୁ ସମାଗମ ହୋଇଥିଲା । ସ୍ୱର୍ଗଦ୍ୱାରରେ ତାଙ୍କ ମରଦେହକୁ ଦାହ କରାଗଲା । ପଞ୍ଚଭୂତରେ ଲୀନ ହେଲେ ଏହି ପ୍ରଜ୍ଞା ପୁରୁଷ ଜଣକ ।

ତାଙ୍କର ଦେହାନ୍ତ ଖବର ପ୍ରଚାରିତ ହେବା ଫଳରେ ତାଙ୍କ ପ୍ରିୟ ଅନୁଷ୍ଠାନ କେଦାରନାଥ ଗବେଷଣା ପ୍ରତିଷ୍ଠାନ ତରଫରୁ ସମ୍ପାଦକ ଶ୍ରୀ ଭାଗୀରଥି ମହାପାତ୍ର ଏବଂ ଗ୍ରନ୍ଥାଗାରିକା ବିନୋଦିନୀ ସାହୁ ଉପସ୍ଥିତ ରହି ପୁଷ୍ପମାଲ୍ୟ ପ୍ରଦାନ ପୂର୍ବକ ଅଶ୍ରୁଳ ଶ୍ରଦ୍ଧାଞ୍ଜଳି ଜ୍ଞାପନ କରିଥିଲେ ।

ଡକ୍ଟର ପଣ୍ଡା, ପ୍ରଖ୍ୟାତ ଐତିହାସିକ କେଦାରନାଥ ମହାପାତ୍ର, ପଣ୍ଡିତ ନୀଳମଣି ମିଶ୍ରଙ୍କର ପରମମିତ୍ର ଓ ସହକର୍ମୀ ଥିବାରୁ ଏକଦା ଏହି ସାରସ୍ୱତ ତ୍ରିବେଣୀଙ୍କର ରଚନା, 'ଓଡ଼ିଆ ସାହିତ୍ୟ-ଇତିହାସ-ସଂସ୍କୃତି' ଭଣ୍ଡାରକୁ ସମୃଦ୍ଧ ଓ ପରିପୁଷ୍ଟ କରିଥିଲା ।

ଓଡ଼ିଆ ସାହିତ୍ୟ-ସଂସ୍କୃତି ଓ ଗବେଷଣା କ୍ଷେତ୍ରରେ ନିରଳସ ଭାବେ କାର୍ଯ୍ୟକରି ଯେଉଁ ଉଜ୍ଜ୍ୱଳ ପରମ୍ପରା ସୃଷ୍ଟି କରିଛନ୍ତି, ତାହା ଚଳିତ ଓ ଭବିଷ୍ୟତ ପିଢ଼ିର ଗବେଷକ, ସାହିତ୍ୟିକ, ଲେଖକଙ୍କ ପାଇଁ ଦୃଷ୍ଟାନ୍ତ ହୋଇ ରହିଯାଇଛି । ନିଜର ନିଷ୍ପାପର ସାଧନା, କୃତୀ ଓ କୀର୍ତ୍ତି ପାଇଁ ଆଧୁନିକ ଓଡ଼ିଶାର ବରପୁତ୍ର ଭାବରେ ଚିର ସ୍ମରଣୀୟ ହୋଇ ରହିବେ ପ୍ରଜ୍ଞାପୁରୁଷ ଡକ୍ଟର ଭଗବାନ ପଣ୍ଡା ।

-୦-

